# ଜିଦିକୁମାରୀ



ଗୀତିମାଧୁରୀ ପଣ୍ଡା

# କୁନି କୁମାରୀ

ଲେଖିକା : ଗୀତିମାଧୁରୀ ପଣ୍ଡା

ସମ୍ପାଦନା : ଗୋବିନ୍ଦ ଚରଣ ପାତ୍ର

ପ୍ରକାଶକ :

ଓଁ ବୁକ୍ ଡିପୋ

କଟକ-୨

# କୁନି କୁମାରୀ


ଲେଖିକା :

**ଶ୍ରୀମତୀ ଗୀତମାଧୁରୀ ପଣ୍ଡା**

ନାରସୁଣପୁର, ବାଲେଶ୍ୱର



ସମ୍ପାଦନା :

**ଶ୍ରୀ ଗୋବିନ୍ଦ ଚରଣ ପାତ୍ର**

ପ୍ରକାଶକ :

**ଓଁ ବୁକ୍ ଡିପୋ**

ବାଲୁବଜାର, କଟକ-୭୫୩୦୦୨

ପ୍ରଥମ ପ୍ରକାଶ : ୧୯୮୯

ମୁଦ୍ରଣ : **ରେଖା ପ୍ରେସ**

ବାମ୍ଫିସାହି, କଟକ-୭୫୩୦୦୯

ମୂଲ୍ୟ : **ପାଞ୍ଚଟଙ୍କା**


**KUNI KUMARI**

by

**Gitimadhuri Panda**


Edited by :

**G. C. Patra**

Published by :

**OM BOOK DEPOT**

Balubazar

Cuttack-753002

First Edition : 1989

Printed at :

**REKHA PRESS**

Bamphi Sahi, Cuttack-9

Price : **Rs 5-00**



ସୁଖରେ ନହୁଏ ବିଭୋର
ଦୁଃଖରେ ନହୁଏ କାତର,
ପର ପାଇଁ ତା'ର କରୁଣାର ଧାର
ବହିଯାଏ ଝରଝର ।
※ ※ ※ ※
ଫସଲରେ ଭରି ତା' କଥା କିଆରୀ,
ମନେ ତା'ର କଳପନା ଅସୁମାରୀ
ସେ କୁନି କୁମାରୀ ।

※ କୁନିକୁମାରୀ ଏକ ବିଦେଶୀ କାହାଣୀ ଛାୟାରେ ଲିଖିତ—

କୁମାରୀ ମାମି, ସେମି, ଅମି, ନମି, ସୁମି ଓ
ରଞ୍ଜନ ହାତରେ ଦେଲି କୁନି କୁମାରୀ ।

ଗୀତମାଧୁରୀ



ସାତ ଆଠ ବର୍ଷର ଝିଅ ଝାନ୍‌ସୀ । ଜନ୍ମବେଳୁ ମା'ଙ୍କୁ ହରାଇଛି । ବାପା ଖୁବ୍ ବଡ଼ଶାଳୀ, ଯୁଦ୍ଧ ବିଭାଗର କ୍ୟାପଟେନ ଥିଲେ । ଅବସର ନେଇ ଆଫ୍ରିକାରେ ରହନ୍ତି । ତାଙ୍କର ପାଖରେ ରହେ ଝାନ୍‌ସୀ । ବାପାଙ୍କ ଇଚ୍ଛା ସେ ବିଲାତରେ ରହି ପାଠପଢ଼ୁ । ଏଣୁ ତା'ର ପ୍ରିୟ ବାପାଙ୍କଠାରୁ ତାକୁ ବହୁ ଦୂରରେ ରହିବାକୁ ପଡ଼ିବ । ଏଥର ସେ ସମୟ ଆସିଲା ।

ଝିଅକୁ ଉତ୍ସାହିତ କରିବା ପାଇଁ ବାପା କହୁଥା'ନ୍ତି—"ତୁ ଯେଉଁଠାରେ ରହିବୁ, ସେଠାରେ ତୋ'ପରି ଅନେକ ଝିଅ ଅଛନ୍ତି । ସଙ୍ଗ ହୋଇ ଖେଳିବୁ, ପଢ଼ିବୁ, କେତେ କଥା ଶିଖିବୁ । ଆଉ ଟିକିଏ ବଡ଼ ହୋଇଗଲେ ପାଠଶାଠ ପଢ଼ି ମୋ ପାଖକୁ ଫେରି ଆସିବୁ ଏବଂ ମୋର ଭଲମନ୍ଦ ବୁଝିବୁ । କିନ୍ତୁ ବାପା ଏ କଥା କହିଲେ ମଧ୍ୟ ନିଜେ ଅନୁଭବ କରୁଥିଲେ ତାଙ୍କର ଏହି ଟିକି ଝିଅଟି ଚାଲିଗଲେ ତାଙ୍କୁ ଖୁବ୍ ଏକୁଟିଆ ଲାଗିବ ।

ଝାନ୍‌ସୀ ଅନ୍ୟ ସାଙ୍ଗ ଝିଅ କଥା ଭାବେ ନାହିଁ । ସେ ପଢ଼ିବାକୁ ଖୁବ୍ ଭଲପାଏ, ଭଲପାଏ ବନେଇ । ବୁନେଇ ଗପ କହିବାକୁ । ନିଜର କଣ୍ଢେଇ 'ସଖୀ' ସହ କଥା

କହିବାକୁ ତାକୁ ଭଲ ଲାଗେ । ତା'ର ବିଶ୍ୱାସ 'ସଖୀ' ସବୁ କଥା ବୁଝିପାରେ ।



( ଘରେ ବାପା ସହ ଝାନ୍‌ସୀ )

**କ୍ୟାପଟେନ୍ ରାଠୋର ଝାନ୍‌ସୀ ପାଇଁ ଓଟପକ୍ଷୀ ପରର ଟୋପି,** ପଶମ ମଫଲର, ଘାଗରା ଓ ସୁନ୍ଦର ସୁନ୍ଦର ଅନେକ ପୋଷାକ ଆଣି ଦେଲେ । ହେଲେ ଏ ସବୁ ସୁନ୍ଦର ଉପହାର ଝାନ୍‌ସୀର ଅତି ପ୍ରିୟ ବାପାଙ୍କଠାରୁ ବିଚ୍ଛେଦ ଶୋକକୁ କାମ କରି ପାରିଲା ନାହିଁ । କିନ୍ତୁ ସେ ସୈନିକର ଝିଅ । ସେ ଜାଣେ ତାକୁ ସାହସୀ ହେବାକୁ ପଡ଼ିବ ସେ ଭାବିଲା, ଏହା ଏକ ଯୁଦ୍ଧ ଯାତ୍ରା ।

କୁହୁଡ଼ିରେ ଛାଇ ଯାଇଥାଏ ଲଣ୍ଡନ ଆକାଶ । ଝାନ୍‌ସୀ ଓ ତା' ବାପା କ୍ୟାପଟେନ ରାଠୋର ଘୋଡ଼ା ଗାଡ଼ିରେ ଚାଲିଥାନ୍ତି ସେହି କୁହୁଡ଼ି ଘେରା ସଡ଼କ ଉପରେ ।

ଘୋଡ଼ା ଗାଡ଼ିଟି ଗୋଟିଏ ଛକ ନିକଟରେ ଅଟକିଲା । ପାଖରେ ପୁରୁଣା କୋଠାଟିଏ । ଫାଟକ ଆଗରେ ଲଟକିଛି ଗୋଟାଏ ନାମ ଫଳକ—"ମିସ୍ ଏମିଲିଅଙ୍କ ଆବାସୀ ବାଳିକା ଶିକ୍ଷାକେନ୍ଦ୍ର" ।

ସେମାନେ ବିଶ୍ରାମ କକ୍ଷରେ ବସିଲେ । କୋଠରୀଟି ବେଶ୍ ଅନ୍ଧକାରାଚ୍ଛନ୍ନ । ଛାତରୁ ଝୁଲୁଥାଏ ଗୋଟାଏ ବଡ଼ ଘଣ୍ଟା । ଝାନ୍‌ସୀ କହିଲା, "ବାପା, ମୋତେ ତ ଏଠାରେ ଭଲ ଲାଗୁ ନାହିଁ ।" ବାପା ନୀରବ ହେବା ପାଇଁ ତା' ହାତକୁ ଟିକିଏ ଚିପି ଦେଇ ଇଙ୍ଗିତ ଦେଲେ ।

ଏହି ସମୟରେ କୋଠରୀ ଭିତରକୁ ପଶି ଆସିଲେ ମିସ୍ ଏମିଲିଆ । ଘରଟି ସହ ତାଙ୍କର ଖୁବ୍ ସାମଞ୍ଜସ୍ୟ । ଦୀର୍ଘ ଦେହ, ବିଷର୍ଣ୍ଣ ବଦନ ଓ ଅସୁନ୍ଦର ଗଢ଼ଣ । ତାଙ୍କର ବଡ଼ ବଡ଼ ଆଖି, ବୃହତ ପାଟିରେ କୃତ୍ରିମ ହସ ଲମ୍ବି ରହିଥିଲା । 'କେଡ଼େ ସୁନ୍ଦର ଝିଅଟିଏ ମ,' ସେ ମୋତେ ଦେଖିବା ମାତ୍ରେ କହି ପକାଇଲେ । (ସବୁ ଧନୀ ପିତା-ମାତାଙ୍କୁ ସେ ପ୍ରଥମେ ଏହିପରି କହିଥାନ୍ତି ।)

ଝାନ୍‌ସୀ ଜାଣିଥିଲା ଯେ ସେ ସୁନ୍ଦରୀ ନୁହେଁ । ତା'ର ଗହଳ ଘନ କେଶ ନାହିଁ କି, ନୀଳ ଆଖି ନାହିଁ । ଟାଆସା ଟିକି ଟିକି ଅବୋଲକରା ମୁଣ୍ଡବାଳ, ଖୁବ୍ ଛୋଟ ମୁହଁକୁ ଢିମା ଢ଼ିମା ଆଖି, ଜମା ସୁନ୍ଦର ନୁହେଁ । ସେ ଯାହା ହେଉ କ୍ୟାପ୍‌ଟେନ ରବୋର ଝାନ୍‌ସୀ ପାଇଁ ଗୋଟିଏ ଜଣକିଆ କୋଠରୀ, ତତ୍ତ୍ୱ ନେବା ପାଇଁ ଜଣେ ପରିଚାରିକା ଓ ସମସ୍ତ ବହିପତ୍ର ବନ୍ଦୋବସ୍ତ କରିଦେଲେ ।

କ୍ୟାପ୍‌ଟେନ୍ ଘୋର ମିସ୍ ଏମିଲିଆଙ୍କୁ ସୂଚାଇଦେଲେ —"ସେ ଭଲ ପଢ଼େ । ପଢ଼ିବାରେ ଯଥେଷ୍ଟ ମନଯୋଗ ଅଛି । କିନ୍ତୁ ତାକୁ ଖେଳିବାକୁ ସୁଯୋଗ ଦେବେ । ତା'ର ଆନନ୍ଦ ପାଇଁ ମୁଁ ସବୁ କିଛି ବ୍ୟବସ୍ଥା କରି ଦେବାକୁ ପ୍ରସ୍ତୁତ ଅଛି ।" ତା'ପରେ ସେ ଝିଅ ପାଖରୁ ଶୋକାକୁଳ ବିଦାୟ ନେଇ ଫେରିଲେ ନିଜ କର୍ମସ୍ଥଳକୁ ।

ଝାନ୍‌ସୀ ସିଧା-ସଳଖ ନିଜ କୋଠରୀ ଭିତରକୁ ପଶି ଭିତରୁ କବାଟ ବନ୍ଦ କରିଦେଲା । ବାପାଙ୍କୁ ବିଦାୟ ଦେବା ପରେ ସେ କିଛି ସମୟ ଏକୁଟିଆ ରହିବାକୁ ଚାହିଁଥିଲା ।

ମିସ୍ ଏମିଲିଆ ଏବଂ ତାଙ୍କ ମୋଟୀ ଭଉଣୀ ଜଣକ କବାଟ ପାଖରେ କାନ ପାରିଥା'ନ୍ତି । କିନ୍ତୁ କିଛି ସ୍ୱର ଶବ୍ଦ ନାହିଁ । ସେମାନେ ଆଶ୍ଚର୍ଯ୍ୟ ହେଉଥାନ୍ତି—"କଥା କ'ଣ ? ଏ ଝିଅଟି ଅନ୍ୟ ପିଲାଙ୍କପରି କାନ୍ଦୁନାହିଁ କାହିଁକି ?"

କିନ୍ତୁ ଝାନ୍‌ସୀ ଯେ ସ୍ୱତନ୍ତ୍ର !

ପର ଦିନ ଝାନ୍‌ସୀ ତା' ବିଦ୍ୟାଳୟ ପୋଷାକ ପିନ୍ଧି ମିସ୍ ଏମିଲିଆଙ୍କ ଟେବୁଲ ପାଖରେ ଛିଡ଼ା ହୋଇଥିବାର ଦେଖି ଅନ୍ୟମାନେ ମୃଦୁ ଗୁଞ୍ଜରଣ ଆରମ୍ଭ କଲେ ।

ନାକଟେକି ଘୃଣା ସହ ଡେଫୋଡ଼ିଲ କହିଲା—"ମୋ ମତରେ ସେ ଜମା ସୁନ୍ଦରୀ ନୁହେଁ ।" ତା' ସାଙ୍ଗ ଲୁନା ଯୋଡ଼ି ଦେଲା—"ଢ଼ିମା ଢ଼ିମା ଆଖି ଦୁଇଟି ତୁମ ଦୁଇଗୁଣ ହେବ ।" ଆଉ ଦେଖ ତା'ର ଘାଗରା !"—ଈର୍ଷାରେ ଜଳିଗଲା ପରି କହୁଥାଏ— ଡେଫୋଡ଼ିଲ ।

ଝାନ୍ସୀ କିନ୍ତୁ ଅବିଚଳିତ ଛିଡ଼ା ହୋଇଥାଏ । ଶିକ୍ଷକ ଆସିବା ପୂର୍ବରୁ ମିସ୍ ଏମିଲିଆ କେତୋଟି ଇଂରାଜୀ ଶବ୍ଦ ଶିଖିବା ପାଇଁ ଦେଲେ । ଝାନ୍ସୀ ଏସବୁ ପୂର୍ବରୁ ଶିଖିଥିଲା । ବାପା ତା' ସହିତ ଇଂରାଜୀରେ କଥାବାର୍ତ୍ତା କରୁଥାନ୍ତି । ସେ ଏକଥା ମିସ୍ ଏମିଲିଆଙ୍କୁ ବୁଝାଇବାକୁ ଚେଷ୍ଟା କରୁଥାଏ । ମାତ୍ର ଏମିଲିଆ ଜମା କର୍ଣ୍ଣପାତ କଲେ ନାହିଁ ।

ଏହି ସମୟରେ ଇଂରାଜୀ ଶିକ୍ଷକ ପହଞ୍ଚିଲେ ।

"ଆପଣଙ୍କର ଏହି ନୂଆ ଛାତ୍ରୀଟି ଖୁବ୍ ମନୁଆ । ଇଂରାଜୀ ଶିକ୍ଷା କରିବାକୁ ତା'ର ଆଦୌ ମନ ନାହିଁ । କିନ୍ତୁ ତା ବାପା ଚାହାନ୍ତି ସେ ଇଂରାଜୀ, ଫରାସୀଭାଷା ଇତ୍ୟାଦି ଶିକ୍ଷା ପାଉ ।"

ଝାନ୍ସୀ ବୁଝାଇବାକୁ ଚେଷ୍ଟାକଲା । "ନା, ତା' ନୁହେ ଯେ" କହି ଧଡ଼କନା ଚାପଡ଼ଟିଏ କଷିଦେଲେ ଏମିଲିଆ— "ମୁହଁ ଉପରେ କଥା କହୁଛୁ !"

ଝାନ୍ସୀ ତା'ର ନିର୍ଦ୍ଦୋଷ ଆଖି ଦୁଇଟି ଟେକି ଅନାଇଲା ଇଂରାଜୀ ଶିକ୍ଷକଙ୍କୁ ଏବଂ ସୁନ୍ଦର ଇଂରାଜୀରେ କହିଲା—"ସାର୍, ଏସବୁ ଶବ୍ଦ ମୁଁ ପୂର୍ବରୁ ଜାଣିଥିଲି । ତେଣୁ ଆଉ ଲେଖିବାର ଆବଶ୍ୟକତା ଉପଲବ୍ଧି କରିନଥିଲି ।"

ଶିକ୍ଷକଙ୍କ ମୁହଁରେ ପ୍ରସନ୍ନତାର ଆଭାସ ଫୁଟିଉଠୁଥାଏ । ପଛପଟରୁ ଅନ୍ୟ ପିଲାଙ୍କ କୋଳାହଳ ସ୍ୱର କ୍ରମେ ବଢ଼ି ଯାଉଥାଏ । ଏମିଲିଆ ସେମାନଙ୍କୁ ଧମକ ଦେଇ କହିଲେ— "ଚୁପ୍ କର, ନୀରବ ରହ, ନହେଲେ ମାଡ଼ ଖାଇବ ।" ପୁଣି

ଝାନ୍‌ସୀ ଆଡ଼କୁ ବୁଲି କହିଲେ—"ମୋତେ ଏକଥା କହି ନଥିଲୁ କାହିଁକି ?"

"ମୁଁ ଚେଷ୍ଟା କରିଥିଲି, କିନ୍ତୁ—



( ଇଂରାଜୀଶିକ୍ଷକ ଓ ଝାନ୍‌ସୀ )

"ଚୁପ୍, ପୁଣି ଟପଖନା କାଢ଼ୁଛି !" —ଏମିଲିଆ ଗର୍ଜି ଉଠିଲେ ।

ଝାନ୍‌ସୀ ନୀରବ ହୋଇଗଲା । ମିସ୍ ଏମିଲିଅଙ୍କ ମନ ଏହି ନବାଗତ ଛାତ୍ରୀଟି ପ୍ରତି ବିଷାଇ ଉଠିଲା ।

ଶ୍ରେଣୀରେ ପାଠ ପଢ଼ୁଥିବା ବେଳେ ଝାନ୍‌ସୀ ଦେଖିଲା ଯେ, ଜଣେ ଝିଅ ତା' ବେଣୀ ଆଗରେ ବନ୍ଧା ଯାଇଥିବା ଫିତା ଚୋରାଇ ନେଉଛି । ଝିଅଟି ଟିକିଏ ମୋଟୀ, ନାମ 'ଏଥେନା' ।

ତାକୁ ଯେତେବେଳେ ପଢ଼ିବାକୁ କୁହାଗଲା, ସେ ଅତି କଦର୍ଯ୍ୟ ଉଚ୍ଚାରଣ କରି ପଢ଼ିଲା । ଲୁନା ଓ ଡେଫୋଡ଼ିଲ ପ୍ରମୁଖ ଅନ୍ୟ ସାଙ୍ଗମାନେ ଚାପରା କରି ହସି ଉଠିଲେ ।

ଏଥେନା ମୁହଁ ନାଲି ପଡ଼ିଗଲା । ଆଖିରୁ ଝରଝର ଆସିଲା ଧାରି ଧାରି ଲୁହ । ଝାନ୍‌ସୀ ମଧ୍ୟ ଖୁବ୍ ଦୁଃଖ ଅନୁଭବ କଲା । କାହାକୁ କୌଣସି ଅସ୍ୱସ୍ତିକର ପରିସ୍ଥିତିରେ ଦେଖିଲେ, ବିପଦରେ ପଡ଼ିଥିବାର ଜାଣିଲେ ଝାନ୍‌ସୀର ମନ ସହାନୁଭୂତିରେ ବିଗଳିତ ହୋଇଯାଉଥିଲା । ସେ ସାଧ୍ୟ ମତେ ସାହାଯ୍ୟ କରିବାକୁ ଚେଷ୍ଟା କରେ । ଏଣୁ ସେ ଏଥେନାକୁ ସାଙ୍ଗ କରିବାକୁ ସ୍ଥିର କରିନେଲା ମନେ ମନେ ।

ପଢ଼ା ଶେଷ ହେବା କ୍ଷଣି ସେ ଏଥେନାକୁ ଡାକି କହିଲା,—"ମୋ କୋଠରୀକୁ ଆସ, ସଖୀ ସହ କଥା ହେବା ।"

ଦୁହେଁ ସାଙ୍ଗ ହୋଇ କୋଠରୀକୁ ଗଲେ, ଉଷୁମ ବିଛଣାରେ ବସିଲେ । ଝାନ୍‌ସୀ 'ସଖୀ'କୁ ଆଣି ଏଥେନା କୋଳରେ ଥୋଇ ଦେଲା । ତା'ପରେ ଆରମ୍ଭ କଲା କେତେ କଣ ଗପ । ଅଧିକାଂଶ 'ସଖୀ' ବିଷୟରେ କାହାଣୀ । ଏକୁଟିଆ ଥିଲାବେଳେ 'ସଖୀ' ଅନେକ ଆଶ୍ଚର୍ଯ୍ୟଜନକ କାର୍ଯ୍ୟ କରିଥାଏ ।

"ସତରେ କଣ 'ସଖୀ' ଚାଲିପାରେ ? କଥା କହିପାରେ ?" ପଚାରିଲା ଏଥେନା ! "ମୁଁ ସେମିତି ଧରିନିଏ । ଆଉ ମୋ ମନ ଭିତରେ ସେସବୁ ସତ ପରି

ଚକିତ ହୋଇଯାଏ । ତୁମେ କ'ଣ କେବେ ଏମିତି ଭାବି ପାରନା ?"

"ମୁଁ ସେତେ ବୁଦ୍ଧିମତୀ ନୁହେଁ । ଅଚ୍ଛା, ତୁମେ ଖୁବ୍ ବୁଦ୍ଧିମତୀ ନା ? "କେଜାଣି ହୋଇଥିବ ।" କଥା କହୁ କହୁ ବିଷଣ୍ଣ ହୋଇଗଲା ଝାନ୍ସୀ । ମନେ ପଡ଼ିଗଲା ବପା ତାକୁ "ବୁଦ୍ଧିମତୀ କୁନି ମା' ବୋଲି ଡାକୁଥିଲେ ।" ଏଣୁ ସେ କଥାର ମୋଡ଼ ବଦଳାଇ ପଚାରିଲା,—"ଏଥେନା ତୁମ ବାପା ତୁମକୁ ଖୁବ୍ ଭଲ ପାଆନ୍ତି, ନୁହେଁ ?"



( ଝାନ୍ସୀ ଓ ଏଥେନା କଥା ହେଉଛନ୍ତି )

ଏଥେନା ତା' ବାପାଙ୍କୁ ଖୁବ୍ ଭୟ କରୁଥିଲା । ତା' ପଣ୍ଡ ଓଲୀ ଝିଅର ବାପା ହୋଇଥିବାରୁ ସେ ଭୀଷଣ ରାଗି ଯାଉଥିଲେ । ସେ କହିଲା,—"ବାପାଙ୍କୁ ମୁଁ ପାଖରେ କେବେ ପାଇନାହିଁ ! ଅଧିକାଂଶ ସମୟ ସେ ଲାଇବ୍ରେରୀରେ ବସି ପଢ଼ାପଢ଼ି କରନ୍ତି ।"

"ମୁଁ କିନ୍ତୁ ମୋ ବାପାଙ୍କୁ ଖୁବ୍ ଭଲ ପାଏ । ସେ ମଧ୍ୟ ମୋତେ ଭଲ ପାଆନ୍ତି । ହେଲେ ମୋତେ ଏଠାରେ ଛାଡ଼ି ଆଜି ସେ ଅନେକ ଦୂରରେ ।"

"ଲୁନା ଓ ଫୋଡ଼ଲ ଆଦ ତୁମ ସାଙ୍ଗ ହେବାର ଯୋଗ୍ୟ । ତଥାପି ମୋତେ ତୁମ ସାଥୀ କରିନେବ କି ? ଅବଶ୍ୟ ମୁଁ ଜାଣେ, ତୁମେ ଖୁବ୍ ବୁଦ୍ଧିମତୀ ଏବଂ ମୁଁ ବୋକିଟାଏ । ତୁମକୁ ଭଲ ଲାଗେ ବୋଲି ମନର କଥାଟି ଜଣାଇଲି ।"

ଝାନ୍‌ସୀର ବିଷର୍ଣ୍ଣ ମୁଖମଣ୍ଡଳରେ ପୁଣି ପ୍ରସନ୍ନତାର ଆଭା ଉକୁଟି ଉଠିଲା । ସେ କହିଲା—"ମୁଁ ନିଶ୍ଚୟ ତୁମକୁ ସାଥୀ କରିବି । ଖାଲି ସେତିକି ନୁହେଁ, ପଢ଼ାପଢ଼ିରେ ମଧ୍ୟ ସାହାଯ୍ୟ କରିବି ।"

ଏତେଥିନାର ଖୁସୀ!ଆଉ ଦେଖେ କିଏ !

ମିସ୍ ଏମିଲିଆ ଝାନ୍‌ସୀକୁ ଆନ୍ତରିକ ଭଲ ପାଉ ନଥିଲେ ହେଁ ଉପର ମନରେ ସବୁବେଳେ ପ୍ରଶଂସା କରୁଥିଲେ । କାରଣ ତାଙ୍କର ଭୟ ଥିଲା, କାଳେ ସେ ବାପାଙ୍କ ପାଖକୁ ଲେଖିଦେବ ଏବଂ ଏତେବଡ଼ ଧନୀ ଘରର ଝିଅଟି ହାତଛଡ଼ା ହୋଇଯିବ ।

ଏଣେ ଡ଼େଫୋଡ଼ିଲ ତା' ପ୍ରତି ଖୁବ୍ ଈର୍ଷା ପରାୟଣା ହୋଇ ପଡ଼ିଥିଲା । କାରଣ ଝାନ୍‌ସୀ ଆସିବା ପୂର୍ବରୁ ସେ ହିଁ ଥିଲା ସମସ୍ତଙ୍କ ମଧ୍ୟରେ ଉଜ୍ଜ୍ୱଳ-ତାରକା । ସେଠାକାର ସବୁ ଝିଅଙ୍କ ଉପରେ ହାକିମୀ ଚଳାଉଥାଏ । ତରାଇ ହରାଇ

ରଖିଥାଏ । ହେଲେ ଝାନ୍ସୀ ସଂପୂର୍ଣ୍ଣ ଭିନ୍ନ । ସମସ୍ତଙ୍କ ପ୍ରତି ତା' ବ୍ୟବହାର ବନ୍ଧୁ ସୁଲଭ ।

ମା' ଛେଉଣ୍ଡ କିଟୀ ପାଇଁ ତା' ମନରେ ଅପୁରନ୍ତ ଦରଦ । ସତେ ସେ ଅବା ମମତାମୟୀ ମା' !

ଝାନ୍ସୀ କେବେ ନିଜକୁ ଦେଖାଇ ହୁଏନାହିଁ । ଏଥେନାକୁ କହେ—"ଘଟଣା କ୍ରମେ ମୋତେ କିଛି ସୁଯୋଗ ମିଳିଛି । ମୋର ଭାଗ୍ୟ ଯେ, ବାପା ମୋର ସବୁ ଦରକାରୀ ଜିନିଷ ଆଣିଦିଅନ୍ତି । ମୁଁ ମିଛଟାରେ ମନଖରାପ କରେନାହିଁ । ମୋ ମନରେ ମଧ୍ୟ ଭୟ ନାହିଁ ।"

ଝାନ୍ସୀ କାହା ମିଛ ଖତ କଥା ଆଦୌ ଧରେନାହିଁ । ସେ କଳ୍ପନା ରାଇଜର ରାଜକୁମାରୀ । କେତେ କ'ଣ ଭାବିପାରେ ଏବଂ ସବୁ ଭାବନାକୁ ନିଜ ଉପରେ ପକାଇପାରେ । ଡେଫୋଡ଼ିଲ ଓ ଲୁନା ତା' କପୋଳ-କଳ୍ପିତ କାହାଣୀ ଓ ଧନୀ ବାପାପ୍ରତି ଅବଜ୍ଞା ପ୍ରକାଶ କରନ୍ତି । କରନ୍ତୁ—ତହିଁରେ ଝାନ୍ସୀର କ'ଣ ଆସେ ଯାଏ ।

ଝାନ୍ସୀ ଅନ୍ୟମାନଙ୍କ ପ୍ରିୟ ହେବାର ବିଶେଷ କାରଣଟି ହେଲା, ତା'ର ଗପ କହିବାର କ୍ଷମତା । ବେଳେ-ବେଳେ ସେ ସାଙ୍ଗମାନଙ୍କ ଗହଣରେ ବସି କେତେ ନୂଆ ନୂଆ କଥା ଗଢ଼ି ଯାଏ । ତା' ଆଖିରେ ଲିଭିଯାଏ ଉତ୍ତେଜନାର ଝଲକ । ସ୍ୱରରେ ଲିଭିଯାଏ ସହାନୁଭୂତିର ସ୍ପର୍ଶ ଓ ଶିହରଣ । ଅଙ୍ଗ-ପ୍ରତ୍ୟଙ୍ଗ ହୋଇଉଠେ ଗତିଶୀଳ ଏବଂ କାହାଣୀର ରଜା, ରାଣୀ ଓ ପରୀମାନେ ସତେ ଅବା ଜୀବନ ପାଇ ଯାଆନ୍ତି ।

ଝାନ୍‌ସୀ କହେ—"ଗଳ୍ପ କହିଲାବେଳେ ଅନୁଭବ କରେ ମୁଁ ନିଜେ ଗଳ୍ପର ପ୍ରତ୍ୟେକ ଚରିତ୍ର । ସେହି ଅନୁଭୂତିରେ ଜଣକ ପରେ ଜଣକର ଭୂମିକାରେ ଆବିର୍ଭୂତ ହୋଇଥାଏ ମୁଁ ।"

ଜଣେ ଝିଅ ଝାନ୍‌ସୀର କାହାଣୀକୁ ପୃଥିବୀର ସର୍ବଶ୍ରେଷ୍ଠ ଆଶ୍ଚର୍ଯ୍ୟଜନକ ବୋଲି ଭାବେ । ତା' ନାମ ପିଙ୍କି, ଗରିବ ଚାକରାଣୀ ସେ । ମୁହଁରେ କାଳିମାର ରେଖା । ବାସନମାଜ କାମରେ ଲାଗିଥାଏ । ସମସ୍ତଙ୍କ ଯୋତାରେ କାଳିଦିଏ । ଦୁଆର-ଘର ଓଳାଏ, ଜାଲେଣିକାଠ କୋ'ଇଲା ଧରି ତଳୁ ଉପରକୁ ଯାଏ,—ତଳକୁ ଆସେ । ସମସ୍ତଙ୍କ ବୋଲହାକ କରେ ।

ସମସ୍ତ କାର୍ଯ୍ୟ ବାଛଣାପତ୍ର ଝାଡ଼ି ଦେବା ଆଳରେ ସେ ଗପ ଶୁଣିବାକୁ ଅଟକିଯାଏ ଝାନ୍‌ସୀ କୋଠରୀରେ ।

ଧନେ ଝାନ୍‌ସୀ ଅତି ଧୀର କୋମଳ ସ୍ୱରରେ କହୁଥାଏ ମତ୍ସ୍ୟ କନ୍ୟା କାହାଣୀ । ସମୁଦ୍ରର ଗଭୀର ନୀଳ ଜଳ ଉପରେ ସନ୍ତରଣ କରୁଥାନ୍ତି । ମତ୍ସ୍ୟ କନ୍ୟାମାନେ ପଛରେ ଟାଣି ଚାଲିଥାନ୍ତି ମୁକ୍ତା ଖଚିତ ମାଛଧରା ଜାଲ । ସମୁଦ୍ରତଟସ୍ଥ ଶଙ୍ଖ ମଲମଲ ପଥରର ପାହାଡ଼ ଉପରେ ବସି ରାଜକୁମାରୀ ଦେଖୁଥାନ୍ତି ଏ ସୁନ୍ଦର ଦୃଶ୍ୟ···।

ଏସବୁ ଶୁଣି ପିଙ୍କି ହାତରୁ ଆଶ୍ଚର୍ଯ୍ୟରେ ଖସି ପଡ଼ିଲା ସଫା କରୁଥିବା ବ୍ରସ । ଗଳ୍ପ କହିବାର ସ୍ୱରର ଚମତ୍କାରିତା ତାକୁ ଟାଣି ନେଇ ଯାଉଥିଲା ଗଭୀର ସମୁଦ୍ରର

ଗୁମ୍ଫା ମଧ୍ୟକୁ । ସେଇଠି ରେଣୁ ରେଣୁ ସୁବର୍ଣ୍ଣ ବାଲି ରାଶି ପରି ବିଛି ହୋଇ ପଡ଼ିଥିଲା । ନୀଳ ନୀଳ ଆଲୁଅରେ ଅର୍ଦ୍ଧ ଆଲୋକିତ ହୋଇ ଉଠୁଥିଲା ଗୁମ୍ଫା ଏବଂ ଖୁବ୍ ଦୂରରୁ ଭାସି ଆସୁଥିଲା ଗୀତର ଲହରୀ······

"ଆରେ, ଆରେ, ସେ ଟୋକୀଟା କ'ଣ ଗଳ୍ପ ଶୁଣୁଛି"—ଅତି କ୍ରୁଦ୍ଧ ସ୍ୱରରେ ଚିତ୍କାର କରି ଉଠିଲା ଡେଫୋଡ଼ିଲ ।

"କାହିଁକି ? ସେ କଣ ଶୁଣିବା ଠିକ୍ ନୁହେଁ ?" ଝାନ୍‌ସୀ ପଚାରିଲା । "ସେ ପରା ଚାକରାଣୀଟାଏ । ନାକ ଟେକି କହିଲା ଡେଫୋଡ଼ିଲ ।"

ଦୁଃଖ ଲାଗିଲା ଝାନ୍‌ସୀକୁ । ଏ ଘଟଣା ପରେ ସେ ପିଙ୍କିକୁ ଡାକିଲା । ତାକୁ ଖାଇବାକୁ ଦେଲା । ପାଖରେ ବସାଇ ମତ୍ସ୍ୟ କନ୍ୟା ଓ ରାଜକୁମାରୀର ଅବଶିଷ୍ଟ କାହାଣୀ କହିଲା ।

"ମୋର ମନେ ହୁଏ ସତେ ଅବା ତୁମେ ଜଣେ ରାଜକୁମାରୀ" ପିଙ୍କି ଅତି ବିନମ୍ର ସତ୍କାରରେ କହିଲା ।

ଝାନ୍‌ସୀର କପାଳରେ ଚିନ୍ତାର ରେଖା ଫୁଟି ଉଠିଲା । ସେ କହିଲା—"ମୁଁ ମଧ୍ୟ ରାଜକୁମାରୀ କିପରି ହୋଇଥିବି ବୋଲି କଳ୍ପନା କରେ । ସମ୍ଭବତଃ ମୁଁ ନିଜକୁ ରାଜକୁମାରୀ ବୋଲି ଭାବି ସେହିପରି ଚଳିବି ।"

ପିଙ୍କି ପେଟପୁରା ଖାଇବାକୁ ପାଏନା । ଏଣୁ ଝାନ୍‌ସୀ ମାଂସ, ପିଠା ଆଣି ତା' ଲୁଗାରେ ବାନ୍ଧିଦିଏ । ସେ ତା'ର

ଅନ୍ଧାରୁଆ ଥଣ୍ଡା ଛୋଟ ଶୋଇବା କୋଠରୀ ଭିତରକୁ ଯାଇ ସେ ସବୁକୁ ଉଦରସ୍ଥ କରେ ଖୁସିରେ । ଅଧିକ ଖୁସି ହୁଏ—ଝ୍ୟାନ୍ସୀର ଅଦର ପାଇଁ ।

ଦିନେ ଝ୍ୟାନ୍ସୀ ବାପାଙ୍କଠାରୁ ଏକ ଉତ୍ତେଜନା ଭରା ଚିଠିଟିଏ ପାଇଲା । ସେ ଜଣେ ବନ୍ଧୁ ସହ ହୀରା-ଖଣି କିଣୁଛନ୍ତି । ସଙ୍ଗେ ସଙ୍ଗେ ତା' ମନ ଭାସିଗଲା ନୀଳ ପରୀ ରାଇଜକୁ । ରତ୍ନ ଜ୍ୟୋତିରେ ଆଲୋକିତ ମାଟିତଳ ପାହାଚ ଏବଂ ଅନ୍ୟାନ୍ୟ ଚମତ୍କାର ଦୃଶ୍ୟ ରାଜ କଳ୍ପନା କରି ସେ ସାଥୀମାନଙ୍କ ଆଗରେ ଗପିବାକୁ ଲାଗିଲା ।

ଭେଜପୋଡ଼ିଲ ଏହା ଶୁଣି କହିଲା,—"ଏ ସବୁ ମନ ଗଢ଼ା କଥା ।" ଲୁନା କହିଲା,—"ରାଜକୁମାରୀ ଦେଖାଇ ହେବା ପାଇଁ ଆଉ ଏକ ବାହାନା ।"

ଅତି ନମ୍ରତା ସହ ଝ୍ୟାନ୍ସୀ କହିଲା,—"ଏ କଥା ସତ ଯେ ମୁଁ ରାଜକୁମାରୀ ବୋଲି ଛଳନା କରେ । କିନ୍ତୁ ଆଜିଠାରୁ ରାଜକୁମାରୀ ପରି ବ୍ୟବହାର କରିବି ।'

ସମୟ ଗଡ଼ି ଚାଲିଲା । ସେ ଦିନ ଥାଏ ଝ୍ୟାନ୍ସୀର ଏକାଦଶ ଜନ୍ମଦିନ । ତା' ବାପା ଗୋଟିଏ ସୁନ୍ଦର ଖେଳନା ଓ ପୋଷାକ ପଠାଇଥିଲେ ତା' ପାଇଁ । ସେ ଭାବିଲା, ଏଇଟି ଶେଷ କଣ୍ଢେଇ । କାରଣ ଏବେ ସେ କୁନି ପିଲା ହୋଇ ନାହିଁ ତ ! ଏ କଥା ଜଣାଇ ବାପାଙ୍କ ପାଖକୁ ଚିଠି ମଧ୍ୟ ଲେଖି ଦେଲା । ହୀରାଖଣି ବିଷୟରେ ଅଧିକ ଜାଣିବା ପାଇଁ ସେ ଆଗ୍ରହୀ ବୋଲି ବାପାଙ୍କୁ

ଜଣାଇଥିଲା । ହେଲେ ବାପାଙ୍କ ପାଖରୁ ପାଇଥିବା ଏଥରର ଚିଠିରେ ଅନ୍ୟାନ୍ୟ କଥା ସହ ଗୋଟିଏ ଧାଡ଼ି ଲେଖାଥିଲା,—"ବ୍ୟବସାୟ ମୋତେ ଖୁବ୍ ଦୁଶ୍ଚିନ୍ତାରେ ପକାଇଛି ।"

ଜନ୍ମ ଦିନରେ ଝାନ୍ସୀ ଗୋଟିଏ ସାଇକେଲ ରଖିବା ପରି କିନିଷ ପାଇଥିଲା । ତାହା ଉପହାର ଦେଇଥିଲା ପିଙ୍କି । ସେ ନିଜେ ତିଆରି କରି ଦେଇଥିଲା ଗୋଟିଏ ପିନ କୁସନ । ତା' ଉପରେ କଣା ଲଗାଇ ଲେଖିଥିଲା "ଶୁଭ ଜନ୍ମଦିନ" । ଝାନ୍ସୀକୁ କହିଲା,—"ମୁଁ ଜାଣେ ଏଇ କ୍ଷୁଦ୍ର ଉପହାରକୁ ତୁମେ ମଖମଲ କୁସନ ଓ କଣା-ଗୁଡ଼ିକୁ ହୀରା କଣା ବୋଲି ଭାବି ପାରିବ ।"

ମିସ୍ ଏମିଲିଆ ଚାହୁଁ ନ ଥିଲେ ମଧ୍ୟ ଝାନ୍ସୀ ଜନ୍ମଦିନ ଉପଲକ୍ଷେ ଭୋଜି ଆୟୋଜନକୁ ମନା କରି ପାରିଲେ ନାହିଁ । ପିଙ୍କିକୁ ଝାନ୍ସୀ ପାଖରେ ଦେଖି ରାଗଟି ତା' ଉପରେ ମେଣ୍ଟାଇ ଦେଲେ ।—"ହଇରେ ଏଠାରେ କାହିଁକି ଛିଡ଼ା ହୋଇଛୁ ? ଯା ଯାଃ, ସେ କୋଣରେ ଛିଡ଼ା ହେବୁ ଯା ।" ଅବଶ୍ୟ ଅଭ୍ୟସ୍ତ ପିଙ୍କି ଉପରେ ରାଗର କୌଣସି ପ୍ରଭାବ ପଡ଼ିଲା ନାହିଁ । ସେ କିଛି ଦୂର ଅପସରି ଗଲା ମାତ୍ର ।

ଏମିଲିଆ ପୁଣି ଆରମ୍ଭ କଲେ—"ଝାନ୍ସୀ ନିକଟରେ ଖୁବ୍ ଧନୀ ହେବାକୁ ଯାଉଛି । ଆଉ ସେଇଥି ପାଇଁ ତା' ବାପା ଉତ୍ତମ ଶିକ୍ଷା ଲାଗି ମୋ ହେପାଜତରେ ଛାଡ଼ିଛନ୍ତି । ସେ ତୁମ ସଭିଙ୍କୁ ଆଗ୍ରହ ସହକାରେ ଡାକିଛି । ତା'କୁ

ଧନ୍ୟବାଦ ଦଅ । ମୁଁ ଯାଉଛି, ତୁମ୍ଭେମାନେ ମଜାକର ।”
—ଏହା କହି ସେ ସେଠାରୁ ଚାଲିଗଲେ ।

ଝିଅମାନେ ଝାନ୍‌ସୀର ଉପହାର ଚାରିପଟେ ଭିଡ଼ିଗଲେ । ଶେଷ କଣ୍ଢେଇଟି ସେମାନଙ୍କୁ ଖୁବ୍ ଭଲ ଲାଗିଲା । ଜଣେ ସାନଝିଅ କହିଲା—“ଏଇ କଣ୍ଢେଇଟି ଉଚ୍ଚରେ ଆମ କାଠୀ ପରି ହେବ ।”

ଝାନ୍‌ସୀ କହିଲା—“ତମେ ସବୁବେଳେ କଳ୍ପନା କରିପାର । ଏହା ସମ୍ଭବ, ତୁମେ ଯେତେବେଳେ ଯାହା ଚାହୁଁଛ ପାଉଛ ବୋଲି । କିନ୍ତୁ ନିଜକୁ ଜଣେ ଦରିଦ୍ର ବାଳିକା ମନେ କରି ଅନ୍ଧାରୁଆ, ଅସନା ପିଣ୍ଡି ଘରେ ରହି ପାରିବକି ?”

ଏଥେନା କିଛି ସମୟ ଚିନ୍ତାକଲା । ତା’ପରେ କହିଲା—“ସମ୍ଭବତଃ ପାରିବ; ସବୁବେଳେ ନିଜକୁ ଛଳନାରେ ବୁଡ଼ାଇ ରଖିବାକୁ ହେବ । ଅବଶ୍ୟ ଖୁବ କଷ୍ଟ ହେବ ।”

ଏହି ସମୟରେ ମିସ୍ ଏମିଲିଆର ସେହି ମୋଟୀ ଭଉଣୀ ସେଠାକୁ ଆସି କହିଲା—“ତମେ ସବୁ ଯାଅ ଜଳଖିଆ ଖାଇବ । ଏଠାରେ ଝାନ୍‌ସୀ ବାପାଙ୍କ ଓକିଲ ସହ ଅପାର କଥାବାର୍ତ୍ତା ହେବ ।”

ପିଲାମାନେ ସେଠାରୁ ଚାଲିଗଲେ ଏବଂ ମିସ ଏମିଲିଆ କଳାକୋଟ ପିନ୍ଧିଥିବା ଓକିଲ ବାବୁ ସହ ଘର ଭିତରକୁ ପଶି ଆସିଲେ ।

ତାଙ୍କ ଆଖି ପଡ଼ିଲା ସେହି ଶେଷ କଣ୍ଢେଇ ଉପରେ । ଦେହରେ ତାର ବହୁ ମୂଲ୍ୟ ପୋଷାକ । ସେ ମନ୍ତବ୍ୟ

ଦେଲେ—"କେମିତ ଅର୍ଥ ବ୍ୟୟ କରାଯାଏ, ସେ ବିଷୟରେ ସେ ଖୁବ୍ ଅଭିଜ୍ଞ।"

ମୁରୁକ ହସି ଏମିଲଆ କହିଲେ—"ନିଶ୍ଚୟ ! ଆପଣ ତାଙ୍କର ହୀରାଖଣି କଥା ମନେ ପକାନ୍ତୁ ନା— ।"

"ନା—ତାଙ୍କର ହୀରାଖଣି ନାହିଁ । କେବେ ମଧ୍ୟ ନଥିଲା । ତାଙ୍କର ଜଣେ ବନ୍ଧୁ ତାଙ୍କୁ ଚଡ଼ାକାଟି ପଳାଇ ଯାଇଛନ୍ତି । ଆଉ ସ୍ୱର୍ଗତ ରାଠୋର—" ।

—"ସ୍ୱର୍ଗତ ରାଠୋର ! ଆପଣ କ'ଣ କହିବାକୁ ଚାହାଁନ୍ତି ?"

—ମିସ୍ ଏମିଲଆ ପଚାରିଲେ ।

—"ସେ ଆଉ ନାହାନ୍ତି । ବ୍ୟବସାୟ ଦୁଶ୍ଚିନ୍ତାରେ ରୋଗରେ ପଡ଼ିଲେ ଯେ ଆଉ ଉଠି ନାହାନ୍ତି । ଝିଅଟି ପାଇଁ ପଇସା ଗୋଟିଏ ମଧ୍ୟ ରଖି ଯାଇନାହାନ୍ତି ।"

"ତା' ହେଲେ ଆପଣ କ'ଣ ମୋତେ ସୂଚାଇଦବାକୁ ଚାହାନ୍ତି ଯେ ଝାନ୍‌ସୀ ଏବେ ଭିକାରୁଣୀ । ଆଉ ସେହି ଭିକାରୁଣୀ ବୋଝ ମୋ ମୁଣ୍ଡରେ ଥୁଆ ହୋଇଛି ।"—ଅତି କଦର୍ଯ୍ୟ ଭଙ୍ଗୀରେ କହିଲେ ଏମିଲିଆ ।

"ତା'ର ପଇସା ନାହିଁ କି କେହି ସମ୍ପର୍କୀୟ ମଧ୍ୟ ନାହାନ୍ତି ।"—ଓକିଲ ଘୃଣାରେ କହିଲେ ।

"କିନ୍ତୁ ମୁଁ ଗଲ୍‌ଥର ଟଙ୍କା ପାଇବା ପାଖରୁ ଏଯାଏ ସବୁ ଖର୍ଚ୍ଚ ତୁଲାଇ ଆସିଛି । ମୁଁ ତାକୁ ଏବେ ରାସ୍ତାକୁ ତଡ଼ିଦେବି ।"—ଉତ୍ତ୍ୟକ୍ତ ହୋଇ କହୁଥା'ନ୍ତି ମିସ୍ ଏମିଲିଆ ।

"ମୁଁ ଅବଶ୍ୟ ସେକଥା କହିବି ନାହିଁ । ଅନୁଷ୍ଠାନର ବଦ୍‌ନାମ ହେବ । ସ୍ୱିଅଟି ଖୁବ୍ ବୁଦ୍ଧିମତୀ । ତାକୁ ଏଠାରେ ରଖି କିଛି କାମରେ ବରଂ ଲଗାଇପାର"—ଏହା କହି ଓକିଲ ବାହାରିଗଲେ ।



( ଝ୍ୟାନ୍‌ସୀ ଓ ତାର ସାଙ୍ଗମାନେ )

ଆଉ ଚରମ କ୍ରୋଧରେ ଏମିଲିଆ ତାଙ୍କ ଭଉଣୀଙ୍କୁ ଡାକ ପକାଇଲେ ।

"କ୍ୟାପ୍‌ଟେନ ଗ୍ରେଠୋର ମରିଯାଇଛନ୍ତି ଏବଂ ମରିଛନ୍ତି କପର୍ଦ୍ଦକ ଶୂନ୍ୟ ହୋଇ । ହତଭାଗିନୀ ମୋ ମୁଣ୍ଡରେ ବୋଝ । ଯା, ତୁରନ୍ତ ବନ୍ଦ କରିଦେ ଉତ୍ସବ ପ୍ରହସନ । ଝ୍ୟାନ୍‌ସୀକୁ କହ କଳାପୋଷାକ ଗୋଟିଏ ପିନ୍ଧୁ । ଆଉ ଝଲମଲିଆ ପୋଷାକ ପନ୍ଧିବାକୁ ହେବନାହିଁ ।

ମୋଟୀ ଭଉଣୀଟିର ହୃଦୟ୍ଟ ମିସ୍ ଏମିଲିଆ ପରି ନୁହେଁ । ସେ ପଚାରିଲା—"ଏବେ କହିବ ?"

"ହଁ, ହଁ, ଏବେ । ଏଇ ମୁହୂର୍ତ୍ତରେ ।"

ଭଉଣୀକୁ ପ୍ରତିବାଦ କରିବା ଶକ୍ତି ତା'ର କାହିଁ ? ଅଗତ୍ୟା ଆଖି ପୋଛୁ ପୋଛୁ ସେ ବାହାରିଗଲା ।

ବାପାଙ୍କ ମୃତ୍ୟୁ ସମ୍ବାଦ ପାଇ ଝାନ୍‌ସୀ ପାଟିରୁ ଉଁ କି ଚୁଁ ଶବ୍ଦଟିଏ ମଧ୍ୟ ବାହାରିଲା ନାହିଁ । ସେ ନିଜ କୋଠରୀ ଭିତରକୁ ଯାଇ କବାଟ ବନ୍ଦ କରିଦେଲା । ତା'ପରେ କେବଳ ଅସ୍ଥିର ପଦଚାରଣା କରିବା ସଙ୍ଗେ ସଙ୍ଗେ କହିବାକୁ ଲାଗିଲା —"ମୋ ବାପା ଆଉ ନାହାନ୍ତି, ମୋ ବାପା ଆଉ ନାହାନ୍ତି ।" ଧାଇଁଗଲା କଣ୍ଢେଇ 'ସଖୀ' ପାଖକୁ ।—ଶୁଣରେ ସଖୀ, ମୋ ବାପା ମରିଯାଇଛନ୍ତି ।

କିଛି ସମୟ ପରେ ଝାନ୍‌ସୀ ପୁରୁଣା ଜାମାଫ୍ରକ୍‌ଟିଏ ପିନ୍ଧି, ମୁଣ୍ଡରେ କଳାଫିତା ବାନ୍ଧି, ସଖୀକୁ ଛାତିରେ ଭିଡ଼ିରଖି ମିସ୍ ଏମିଲିଆଙ୍କ ପାଖକୁ ଚାଲିଲା ।

ତାକୁ ଦେଖି ଏମିଲିଆ ନାକ ଟେକି କହିଲେ—"ଏଥର କଣ୍ଢେଇ ଖେଳ ଛାଡ଼ । ବର୍ତ୍ତମାନ ତୁ ଗୋଟିଏ ଭିଖାରୀ ଝିଅ ସହ ସମାନ । ପେଟ ପୋଷିବା ପାଇଁ କିଛି କାମକର ।"

"ମୁଁ କ'ଣ କିଛି କରିପାରିବି ?" କହିଲା ଝାନ୍‌ସୀ —"ଅବଶ୍ୟ ଯଦି କିଛି କାମରେ ଲାଗି ଯାଆନ୍ତି, ତା'ହେଲେ ଏ ଦୁଃଖ ଅନେକ ପରିମାଣରେ ସହ୍ୟ ହୁଅନ୍ତା ।"

"ହଁ, ପାରିବୁ । ସାନ ପିଲାମାନଙ୍କ ଖବର ଅନ୍ତର ବୁଝିବୁ ; ଫାଇଫରମାସ ପାଳନ କରିବୁ ଏବଂ ଫ୍ରେଞ୍ଚରେ ସାହାଯ୍ୟ କରିବୁ । ଯା–ଏବେଠାରୁ କାମରେ ଲାଗିଯା ।"

ଝାନ୍‌ସୀ ତା' ନିଜ କୋଠରୀକୁ ଫେରିଗଲା । କିନ୍ତୁ ବାଧାଦେଲା ମିସ୍ ଏମିଲିଆଙ୍କ ଭଉଣୀ—"ଆଉ ଏ କୋଠରୀ ତୋର ନୁହେଁ । ଯା, ପିଙ୍କି ପାଖରେ ସିଢ଼ିତଳଘରେ ରହିବୁ ।"

ଅତି ଧୀର ପଦକ୍ଷେପରେ ସିଢ଼ିତଳ କୋଠରୀ ପାଖକୁ ଗଲା ଝାନ୍‌ସୀ । ଦରଜା ଖୋଲିଲା । ଅସନା, ଅନ୍ଧାର ଘର । ଥଣ୍ଡା ବସା ବାନ୍ଧିଛି । ଝାନ୍‌ସୀ ପାଇଁ ତାହା ସତେ ଅବା ଏକ ଭିନ୍ନ ଜଗତ ।

ହାତଭଙ୍ଗା ପୁରୁଣା କାଠ ଚୌକିଟି ଉପରେ ବସି ପଡ଼ିଲା ଝାନ୍‌ସୀ । କୋଳରେ ଧରିଥିବା 'ସଖୀ' ମୁଣ୍ଡରେ ମୁହଁ ଗୁଞ୍ଜି ବସିରହିଲା । ପାଟିରୁ ଗୋଟିଏ ବି ଶବ୍ଦ ବାହାରିଲା ନାହିଁ ।

କିଛି ସମୟ ପରେ ଦରଜାରେ ମୃଦୁ ଆଘାତ ଶବ୍ଦ ଶୁଣି ଅନାଇଲା ଝାନ୍‌ସୀ । ସ୍ତବ୍ଧ, କାତର ପିଙ୍କି ଆଶ୍ଚର୍ଯ୍ୟରେ ତା' ଆଡ଼େ ଅନାଇଛି ।

"ଆରେ ପିଙ୍କି" ! କହିଲା ଝାନ୍‌ସୀ—"ମୁଁ କହୁଥିଲି ନା, ଆମେ ସମସ୍ତେ ସମାନ । ଦେଖ, ଆଜି ସେ କଥା ସତରେ ପରିଣତ ହୋଇଛି । ମୁଁ ଆଉ ରାଜକୁମାରୀ ନୁହେଁ ।"

ପିଙ୍କି ଧାଇଁ ଗଲା ତା' ପାଖକୁ । ହାତଧରି କାନ୍ଦି କାନ୍ଦି କହିଲା—"ନା, ନା, ଏହା ହୋଇ ପାରେନା । ଯେଉଁ ପରିସ୍ଥିତି ଆସୁନା କାହିଁକି ତୁମେ ସେହି ରାଜକୁମାରୀ । ତୁମକୁ କେହି ସାନ କରିପାରିବ ନାହିଁ ।



ଝାନ୍‌ସୀ ଭୁଲି ପାରେନା ରାଜରାଣୀ ଝିଅ ଭାବରେ ତା' ପ୍ରଥମ ରାତ୍ରିର କଥା । ଅନ୍ଧାର ଘର । ସାଇଁ ସାଇଁ ପଶୁଛି କୋହଲି ପବନ । ମୂଷାଗୁଡ଼ିକ ଧଡ଼୍ ଧାଡ଼୍ କରି ଡିଆଁ ମାରୁଛନ୍ତି ।

ପୁଣି ପରଦିନ ଆରମ୍ଭ ହୁଏ ତାର କାର୍ଯ୍ୟ । ଛୋଟ ପିଲାମାନଙ୍କୁ ଇଂରାଜୀ ଅକ୍ଷର

(ମନ ଦୁଃଖରେ ଝାନ୍‌ସୀ ବସିଛି)

ଶିଖାଇବା ଛଡ଼ା ନିଜେ ପଢ଼ିବା ବା ସାଙ୍ଗମାନଙ୍କ ସହ ମିଶିବାର ଆଉ ସୁଯୋଗ ନାହିଁ । ସେଇ ରୋଷେଇ ଘରେ ଖାଇବାକୁ ପଡ଼ିଲା ଏବଂ ସମସ୍ତଙ୍କ ଆଦେଶ ପାଳିବାକୁ ହେଲା । ଘର ଓଳାଇବା, ବାସନ ମାଜିବା, ଯୋତାରେ ରଙ୍ଗଦେବା··· ସବୁ କରିବାକୁ ହେଲା ।

କୁନି-ରାଜକୁମାରୀରୁ ଚାକରାଣୀ ଝିଅ !

ସେ ଦିନ ରାତି କଠିନ ପରିଶ୍ରମ କରୁଥାଏ । ଯେପରିକି ସେ କାହାରି ଦୟାରେ ନୁହେଁ ! ନିଜ ରୋଜଗାରରେ ପେଟ ପୋଷୁଛି । କର୍ତ୍ତା, ଚାକର ନମାନ ସେ ଅନ୍ୟମାନଙ୍କ ଆଦେଶ ଅନୁଯାୟୀ କାର୍ଯ୍ୟକରେ । ଭୋକରେ ପେଟ ଜଳିଯାଏ । ହେଲେ, କେହିଥରେ ଆହା କରେନାହିଁ । ଏବେ ତା'ର ଏକମାତ୍ର ସାଙ୍ଗ ଚିଙ୍କି ।

ଝାନ୍‌ସୀର ମନ ଏପରି ବଦଳି ଗଲା ଯେ, ସେ ପକ୍ଷୀକୁ ଦିନେ ଫିଙ୍ଗି ଦେଇ କହିଲା,—"ତୁ କଣ୍ଢେଇଟିଏ; କିଛି ବୁଝିବା ଭଳି ତୋର ଶକ୍ତି କାହିଁ ଯେ !"

ଝାନ୍‌ସୀର ଏପରି ଦୁଃଖ ସମୟରେ ଏଥେନା ଘରକୁ ଯାଇଥିଲା । ସେ ଫେରିଆସି ଏହି ପରିବର୍ତ୍ତନ ଲକ୍ଷ୍ୟ କଲା । ଝାନ୍‌ସୀ ତା' ପାଖ ଦେଇ ଚାଲିଗଲା ଅଥଚ କଥା କହିଲା ନାହିଁ । ଆଶ୍ଚର୍ଯ୍ୟ ହେଲା ସେ ।

ଦିନେ ରାତିରେ ସେ ଝାନ୍‌ସୀ ପାଖରେ ପହଞ୍ଚିଲା । ଉଠି ବସିଲା ଝାନ୍‌ସୀ । ଏଥେନା କହିଲା -"ଝାନ୍‌ସୀ ମୁଁ ଘରକୁ ଚାଲି ଯାଇଥିଲି । ଭାବିଲି, ମୋତେ ତୁମେ ଭୁଲି ଯାଇଛ । ଆଚ୍ଛା, ତୁମେ ଏପରି ଏକ ଅସନା କୋଠରୀ ଭିତରେ ରହୁଛ କପରି ?"

"ଇଏ ଏକ ନୂଆ ସ୍ଥାନ । ଏକଥା କଳ୍ପନା କରି ପାରିଲେ ହେଲା ।" ଏହା କହିବା ସଙ୍ଗେ ସଙ୍ଗେ ଦୁଃସମ୍ବାଦ ପାଇବା ଦିନଠାରୁ ବନ୍ଦ ଥିବା ତା' କଳ୍ପନାର ଦ୍ୱାର ଖୋଲିଗଲା । ସେ ପୁଣି କହିଲା—"ଧରାଯାଉ ମୁଁ ବାଷ୍ଟାଇଲ ଦୁର୍ଗର ଜଣେ ବନ୍ଦୀ । କେତେ କାହୁଁ ଦିନରୁ ବନ୍ଦୀ ଅଛୁ । ସମସ୍ତେ ଭୁଲି ଗଲେଣି ମୋ କଥା । ମିସ୍ ଏମିଲିଆ ଜେଲ ରକ୍ଷକ । ଆଉ ପିଙ୍କି ? ମୋ ପରି ଆଉ ଜଣେ ବନ୍ଦୀ । ଏଠାରେ ମୂଷା, ବଳେଇ ମୋର ବନ୍ଧୁ ।"

ସେ ଏଥେନା ଆଡ଼କୁ ବୁଲି ପଡ଼ିଲା । ତା ଆଖିରେ ଝଟକୁ ଥିଲା ବନ୍ଧୁତ୍ୱ ଝାନ୍‌ସୀର କ୍ୟୋତ । ସେ କହିଲା—

"ମୁଁ ପୂର୍ବପର କଳ୍ପନା କରି ପାରିଲେ ସମ୍ପୃକ୍ତିରେ ଭଲରେ ରହିପାରିବ ।"

ତା'ପରେ ଦୁହେଁ ଛାତ ଉପରକୁ ଗଲେ । ଝାନ୍ସୀ ଏଥେନାକୁ ବୁଲି ବୁଲି ଚତୁଃପାର୍ଶ୍ୱର ଦୃଶ୍ୟ ଦେଖାଇଲା । ପାଖ କୋଠାରେ କେହି ନ ଥିବାର ଦେଖି ଝାନ୍ସୀ କହିଲା,—"ମୋ ମନ କହୁଛି ସେ କୋଠାରେ ନିକଟରେ କିଏ ରହିବ ।"

ଏଥେନା ବୁଝୁଥାଏ ଝାନ୍ସୀର ଅଭୁତ କଳ୍ପନା ଶକ୍ତି ସଂପର୍କରେ ।

ଛକରେ ଥିବା କୋଠା ଘରଟିରେ ଗୋଟିଏ ବଡ଼ ପରିବାର । ମା' ପାଖରୁ ସନ୍ତେ ଅବା ଝରି ପଡୁଥାଏ ମମତାର ଧାର । ବାପାଙ୍କ ସ୍ନେହର ପାହାଡ଼ କୁହାଯାଇ ପାରେ । ଆଉ ପିଲାମାନେ ? ସତରେ ଖୁବ୍ ଭଲ ପିଲା ସେମାନେ ।

ଦିନକର ଘଟଣା । ଅସନା ଛିଣ୍ଡା ଫ୍ରକ୍ ଓ ମଇଳା ଟୋପି ସହ କ୍ଷୁଧାର୍ତ୍ତ ଅବସ୍ଥାରେ ଛିଡ଼ା ହୋଇଥାଏ ଝାନ୍ସୀ । ତାକୁ ଦେଖି ସେହି ପରିବାରର ଜଣେ ପିଲା କହିଲା,—"ତୁମେ ଭୋକିଲା ଦେଖାଯାଉଛ । ନିଅ ଏଇ କେତୋଟି ପଇସା ଅଛି ମୋ ପାଖରେ । ଏଥିରେ କିଛି କିଣି ଖାଇଦିଅ ।"

ଝାନସୀ ଖୁବ୍ ଆଘାତ ପାଇଲା । ଅନୁଭବ କଲା, ସେ ଏବେ ଗରିବ ଝିଅଟିଏ ହୋଇ ଯାଇଛି । ଠିକ୍ ଯେମିତି

ଭିକାରୀ ଝିଅମାନଙ୍କୁ ସେ ଦେଖୁଥାଏ ତା' ଭଲ ଦିନ-ମାନଙ୍କରେ ।

ମା' ଏହା ଶୁଣି ପୁଅକୁ ଆକଟି କହିଲେ,—"କାହିଁକି ସେ ଝିଅକୁ ପଇସା ଦେଲୁ ? ମୁଁ ନିଶ୍ଚିନ୍ତ ଯେ ସେ ଭିକାରୀ ନୁହେଁ । କ'ଣ ରାଗି କରି କିଛି କହିଲାକି ?"

"ହଁ, ସେ କହିଲା—ଏହା ମୋ ପାଇଁ ଅନେକ କିଛି ।" ମା' ଟିକିଏ ଭାବିଲେ ଯେପରି ! ତା'ପରେ କହିଲେ—"ଜଣେ ଭିକାରୀ ପାଖରୁ ଏପରି କଥା ଆଶା କରା ଯାଏନା ।"

ଏହାପରେ ସେହି ବଡ଼ ପରିବାରର ସଭିଏଁ ଝାନ୍‌ସୀ ପ୍ରତି ଆକୃଷ୍ଟ ହୋଇ ପଡ଼ିଲେ । ସେମାନେ ତା'ର ଗତିବିଧି ପ୍ରତି ଲକ୍ଷ୍ୟ ରଖିଲେ । ନିଜ ଭିତରେ କେତେ କ'ଣ କୁହା-କୁହି ହୁଅନ୍ତି ତା ବିଷୟରେ ।

ଆଉ ଦିନକର ଘଟଣା । ଝାନ୍‌ସୀ ଗୋଟିଏ ପାଉଁରୁଟି ଦୋକାନ ଆଗରେ ୨୦ ପଇସିଟିଏ ପାଇଲା । ସେ ଦୋକାନକୁ ଯାଇ କାହାର ପଇସା ହଜିଛି କି ନାହିଁ ସନ୍ଧାନ କଲା । ତା'ର ସତପଣିଆରେ ମୁଗ୍‌ଧ ହୋଇ ଦୋକାନୀ ତାକୁ ପାଞ୍ଚଟି ପାଉଁରୁଟି ଦେଲା । ସେ ବାହାରକୁ ବାହାରି ଆସି ଦେଖିଲା ଭିକାରୁଣୀ ଝିଅଟିଏ ବାହାରେ ଛିଡ଼ା ହୋଇଛି । ତା' ହାତକୁ ବଢ଼ାଇଦେଲା ଚାରିଟି ପାଉଁରୁଟି । "ମୁଁ ରାଜକୁମାରୀ ହୋଇଥିଲେ ବି ଏହା କରିଥା'ନ୍ତି" —ଭାବିଲା ଝାନ୍‌ସୀ ।

ଦିନ କେତୋଟି ବିତିଗଲା । ଦିନେ ଖାଲିଥିବା ପାଖ ଘରକୁ ଜିନିଷପତ୍ର ଧରି ଗୋଟିଏ ଗାଡ଼ି ଆସିଲା । ଝାନ୍‌ସୀ

ଲକ୍ଷ୍ୟକଲା ସେସବୁ ଜିନଷରେ ଭାରତୀୟ କାରୁକାର୍ଯ୍ୟ ଖୋଦିତ । ତା' ଛଡ଼ା ଗୋଟିଏ ବୁଦ୍ଧମୂର୍ତ୍ତି ମଧ୍ୟ ତହିଁରେ ଅଛି । ସେ ଭାବଲା—"ନିଶ୍ଚୟ କିଏ ଭାରତବାସିନ୍ଦା ପାଖ ଘରେ ରହୁଛନ୍ତି ।"

ଜିନଷପଣ ବୋହୁଥିବା ଲୋକମାନଙ୍କ ତତ୍ତ୍ୱାବଧାନ କରୁଥାନ୍ତି ଛକ ପାଖ ପରିବାରର ମାଲିକ । ଏହା ଲକ୍ଷ୍ୟ କରୁଥିବା ସମୟରେ ପିଙ୍କି ଦୌଡ଼ିଯାଇ ଘରୁ ଧାଇଁ ଆସି ଝାନସୀକୁ କହିଲା—"ଶୁଣିଲଣି, ପାଖଘରେ ଜଣେ ଭାରତୀୟ ରହିବେ । ସେ ଖୁବ୍ ଧନୀ । କେଜାଣି କ'ଣ ବେମାରୀ



( ଭଦ୍ରଲୋକ—ନର୍ସ ଓ ଚାକର ସହ )

ହୋଇଛି, ଡାକ୍ତର ଦେଖାଇବେ । ଆଉ ଆମ ଏଇ ଛକ ପାଖ ଘରର ଭଦ୍ରଲୋକ ଜଣକ ତାଙ୍କ ଓକିଲ ।

ପରଦିନ ଜଣେ ଭାରତୀୟ ଭଦ୍ରଲୋକ ସାଙ୍ଗରେ ଜଣେ ନର୍ସ ଏବଂ ଦୁଇଜଣ ଚାକର ଓ ଜିନିଷପତ୍ର ଧରି ସେ ଘରେ ଆସି ପହଞ୍ଚିଲେ ।

ଅଳ୍ପ ସମୟ ମଧ୍ୟରେ କାନକୁ କାନ କଥା ବାଜିଗଲା ଯେ, ଭଦ୍ରଲୋକ ଜଣକ ଖଣି କିଣି ବିପୁଳ ଅର୍ଥ କ୍ଷତି ସହିଥିଲେ । ସେଥିପାଇଁ ମାନସିକ ଆଘାତ ପାଇ ରୋଗଗ୍ରସ୍ତ ହୋଇ ପଡ଼ିଲେ । ମାତ୍ର ଏବେ ସେସବୁ ଫେରି ପାଇଛନ୍ତି ଓ ଲଣ୍ଡନରେ ଚିକିତ୍ସା ହେବା ପାଇଁ ଆସିଛନ୍ତି ।

"ମୋ ବାପାଙ୍କର ଠିକ୍ ଏହି ଅବସ୍ଥା" —ଭାବିଲା ସ୍ଥାନ୍ସୀ ।

ଦିନେ ସେ ଛାତ ଉପରେ ଛିଡ଼ାହୋଇ ସୂର୍ଯ୍ୟାସ୍ତର ଦୃଶ୍ୟ ଦେଖୁଥାଏ । ପାଖଘରୁ ଗୋଟିଏ ଶବ୍ଦ ଶୁଣିଲା । ସେଆଡ଼କୁ ଅନାଇ ଦେଖିଲା—ମାଙ୍କଡ଼ଟିଏ ବସିଛି । ଝରକା ଫାଙ୍କରୁ ତା' କଳା ମୁହଁ ମଧ୍ୟରେ ମିଞ୍ଜି ମିଞ୍ଜି କରୁଛି ଯୋଡ଼ିଏ ଆଖି । ପଛରେ ତାକୁ ଧରି ଛିଡ଼ା ହୋଇଛି ଭାରତୀୟ ଭଦ୍ର-ଲୋକଙ୍କର ଚାକର ।

ସ୍ଥାନ୍ସୀ ଟିକିଏ ହସିଦେଲା । ମାଙ୍କଡ଼ଟି ମଧ୍ୟ ଖୁସିହେଇ ହେଲା । ଚାକର ମାଙ୍କଡ଼କୁ ସ୍ଥାନ୍ସୀ ପାଖକୁ ଯିବାପାଇଁ ଛାଡ଼ିଦେଲା । ସେ ଛାତ ଉପରେ ଡେଇଁ ଡେଇଁ ଆସି ସ୍ଥାନ୍ସୀ କାନ୍ଧଉପରେ ବସିଗଲା । ସ୍ଥାନ୍ସୀ ହିନ୍ଦୀରେ ପଚାରିଲା— "ତୁମେ ତାକୁ ଏଠାରୁ ନେବ କିପରି ?"

ଚାକର ଆଶ୍ଚର୍ଯ୍ୟ ହୋଇଗଲା, ଏତେ ଦୂରରେ ଝିଅଟି ନିଜ ମାତୃଭାଷା କହୁଥିବାର ଶୁଣି । ସେ ଅତି ବିନମ୍ର ହୋଇ

କହିଲା—"ଠିକ ସାଆନ୍ତାଣୀ, ମୁଁ ଯାଇ ତୁମ ପାଖରୁ ନେଇ ଆସିବି, ବ୍ୟସ୍ତ ହୁଅନାହିଁ ।"

ଦୀର୍ଘଦିନ ପରେ ଝାନ୍‌ସୀ ଏପରି ଏକ ସମ୍ବୋଧନ ଶୁଣିଲା । ତା' ବାପାଙ୍କ ଚାକରମାନେ ତାକୁ ଏପରି ଡାକୁଥିଲେ ।

ଚାକର ଜଣକ ତା' ପାଖରୁ ମାଙ୍କଡ଼ ନେଇ ଯିବାକୁ ଆସି ମାନ୍ୟ କଲା । କଥା ପ୍ରସଙ୍ଗରେ ତା' ମାଲିକ ଅସୁସ୍ଥ ହେବାର କାରଣ ଏବଂ ମାଙ୍କଡ଼ହିଁ ତାଙ୍କ ମନ ଭୁଲାଇବା ପାଇଁ କେତେ ଖେଳ ଦେଖାଏ, ଇତ୍ୟାଦି କହିଗଲା ।



( ଝାନ୍‌ସୀର କୋଳରେ ମାଙ୍କଡ଼ )

ସେ ଚାଲିଗଲା ପରେ ଝାନ୍‌ସୀ ପୂର୍ବଠାରୁ ଯଥେଷ୍ଟ ଆନନ୍ଦ ଅନୁଭବ କଲା । ସେ ଭାବିଲା—"ମୁଁ ସମ୍ଭବତଃ

ଏବେ ବ ରାଜକୁମାରୀ ପରି ଜଣା ପଡୁଛି—ବନ୍ଦୀଶାଳା ଭିତରେ 'ମେରୀ ଏଣ୍ଟୋନୀ।"

ଭାରତୀୟ ବାବୁ ତାଙ୍କ ଓକିଲଙ୍କ ସହ କଥା ହେଉଥିଲେ । ଗୃହର ଜଣକ ଖାନ୍‌ସାମା ପାଖରୁ ଫେରିଯାଇ ତାଙ୍କୁ କହିଲା—"ବାବୁ, ଏପାଖ ଘର ଗୃହକର୍ତ୍ରୀ ଝିଅଟି ସଂଭ୍ରାନ୍ତ ଘର ପିଲାପରି ଜଣା ପଡୁଛି । କେଜାଣି କେମିତ ଗୃହକର୍ତ୍ରୀ କାମରେ ରହି ପେଟ ପୋଷୁଛି ।"

ସେ କହିଲେ—"ଖୁବ୍ ଦୁଃଖରେ ଥିବ ନିଶ୍ଚୟ । ଆମେ ମଜାରେ ଅଛୁଁ, ଅଥଚ ଝିଅ ପିଲାଟି କେତେ କଷ୍ଟ ସହୁଥିବ ।" ଟିକିଏ କଣ ଭାବି କହିଲେ—"କ୍ୟାପ୍‌ଟେନ୍ ର଼୍ଯୁଁରଙ୍କ ଝିଅ ଅବସ୍ଥା କ'ଣ ହୋଇଥିବ କେଜାଣି ? କେତେ ଦୁଃଖରେ ଥିବ ବିଚାରୀ । ଅଥଚ ତା' ବାପାର ପ୍ରାପ୍ୟ ଅନେକ ସମ୍ପଦ ମୋ ପାଖରେ ଜମା ରହିଛି ।"

"ତା'ର ହତଭାଗ୍ୟ ବାପା ଯଦି ଜାଣିପାରି ଥା'ନ୍ତେ ଯେ, ଅବଶେଷରେ ହୀରାଖଣିର ସନ୍ଧାନ ମିଳିଲା !"—ଦୀର୍ଘଶ୍ୱାସ ଛାଡ଼ି କହିଲେ ଓକିଲବାବୁ ।

ଭଦ୍ରଲୋକ ଜଣକ କହିଲେ—"ସମ୍ଭବତଃ ଝିଅଟି ଏଇ ଲଣ୍ଡନ ବା ପ୍ୟାରିସରେ ଅଛି । ମୁଁ ତା'ର ସନ୍ଧାନ ନେବି ।"

ଏମାନେ କୁଆଡ଼ୁ ଜାଣିବେ ଯେ, ଦୀର୍ଘଦିନ ଧରି ଯାହାର ସନ୍ଧାନ ନେଉଛନ୍ତି, ସେ ଏଇ ପାଖ ଘର ସିଡ଼ିତଳ ଅନ୍ଧାର କୋଠରୀରେ ଦିନ କାଟୁଛି ।

ପରଦିନ ରାତରେ ଝାନ୍‌ସୀ ଏବଂ ପିଙ୍କି ସେହି ଅନ୍ଧାର କୋଠରୀରେ ବସିଥା'ନ୍ତି । ଷ୍ଟୋଭରେ ଜଳୁଥାଏ ପେଟ, ରାତରେ ଆଉ ଖାଇବାକୁ ମିଳିବ ନାହିଁ ।

ଏକଥା ଏଥେନା କେମିତି ଜାଣିଲା କେଜାଣି ଘରୁ ଆସିଥିବା କେକ୍, ମିଠାଇ ଇତ୍ୟାଦି ଧରି ସେମାନଙ୍କ ନିକଟରେ ପହଞ୍ଚିଲା ।

ଝାନ୍‌ସୀ ପୁରୁଣା ଚଦର ଖଣ୍ଡିକ ପାରିଦେଲା ଭଙ୍ଗା ଚୌକି ଉପରେ । ଭଙ୍ଗା ଲୋଟାରେ ଖଣ୍ଡିଏ କାଗଜରୁ ନିଆଁ ଲଗାଇ ପୁରାଇ ଦେଲା । ସତେ ଅବା ନିଆଁ କୁଣ୍ଡ । ତା' ଆଖିରେ ରାଜକୁମାରୀର ଦୀପ୍ତି । ସେ ଭୁଲିଗଲା



( ପିଞ୍ଜରା ଘରେ ଝାନ୍‌ସୀ ବସିଛି )

ତାହାରେ କେମିତି ଥଣ୍ଡା ପଡ଼ୁଛି । ଏକ ବିଶେଷ ଉଷ୍ମତାରେ ତା ମନ ଭରିଗଲା । ସେ କହିଲା,—"ଏହା ଏକ ଯାଦୁ ଭୋଜି ।"

ଏହି ସମୟରେ ଦ୍ୱାର ପାଦ ଶବ୍ଦ ଶୁଣାଗଲା । ପାହାଚରେ ଏଥେନା ଝାନ୍ସୀ ପାଖକୁ ଆସିଥିବା କଥା ଡେଫୋଡ଼ିଲ ପାଖରୁ ଶୁଣି ମିସ୍ ଏମିଲିଆ ଧାଇଁ ଆସିଛନ୍ତି । ଚଦର ସହ ସମସ୍ତ ଖାଦ୍ୟକୁ ଉଠାଇ ନେଲେ ସେ । ପିଙ୍କିକୁ ତା' ଜାଗାକୁ ପଠାଇ ଦେଲେ । ଝାନ୍ସୀ ତାଙ୍କ ଆଡ଼କୁ ଅନାଇଲା ।

"କ'ଣ ଏମିତି ଅନାଇଛୁ ?" ଅତି ରୁକ୍ଷ ଭାବରେ ପଚାରିଲେ ଏମିଲିଆ ।

"ମୁଁ ଭାବୁଛି, ଆଜି ରାତିର ଘଟଣା ଯଦି ମୋ ବାପା ଜାଣନ୍ତେ, ତା' ହେଲେ କ'ଣ ହୋଇଥାନ୍ତା ?"—ଝାନ୍ସୀ କହିଲା ।

"ହୁଁ, ଯେତେ ସବୁ ବାଜେ କଥା । ବଦ୍‌ମାସ୍ କେଉଁଠିକାର ।" ଝାନ୍ସୀକୁ ଗାଳି ଦେଉ ଦେଉ ଏଥେନାକୁ ଟାଣି ନେଇ ଚାଲିଗଲେ ମିସ୍ ଏମିଲିଆ ।

ଆଉ ଝାନ୍ସୀ ?

ନିଜ ଛୋଟିଆ ସପ ଉପରେ ଶୋଇପଡ଼ି ଆଜିର ଦୁଃଖଦ ଘଟଣାକୁ ସହିବାକୁ ଚେଷ୍ଟା କରୁଥିଲା । "ସତରେ ଯଦି ଆଜି ଦ୍ୱେଜି ସପ୍ତଟିଏ ହୋଇଥାନ୍ତା । ପାଖରେ ଜଳୁଥା'ନ୍ତା ନିଆଁ କୁଣ୍ଡ !"...... ଏହି କଳ୍ପନାର ସ୍ରୋତ ଭିତରେ ହଜିଗଲା ଝାନ୍ସୀ ।

ଝାନ୍ସୀ ଯେତେବେଳେ ଗଭୀର ନିଦରେ ଘୁଙ୍ଗୁଡ଼ି ମାରୁଛି, ଦୁଇଟି ଛାୟା ମୂର୍ତ୍ତି ପ୍ରବେଶ କଲେ ତା'

କୋଠରୀରେ । ଅନ୍ଧାରରେ କିଛି ସମୟ ବୁଲି ବୁଲି କରି ବାହାରିଗଲେ ।

ଯଥା ସମୟରେ ଝାନ୍‌ସୀର ନିଦ ଭାଙ୍ଗିଲା । ନିଜ କୋଠରୀକୁ ଦେଖି ସେ ବିଶ୍ୱାସ କରିପାରୁ ନାହିଁ, ସେ ଚେଇଁଛି ନା ଏବେ ବି ଶୋଇ ସ୍ୱପ୍ନ ଦେଖୁଛି ।



( ଝାନ୍‌ସୀ ଖୁସି ମନରେ ବସିଛି )

ଏଇତ—ତା' ଦେହରେ ଗରମ କମ୍ବଳଟିଏ ଘୋଡ଼ା ହୋଇଛି । କୋଠରୀ କୋଣରେ ଜଳୁଛି ନିଆଁ । ଛୋଟ ଚୌକିଟି ଉପରେ ନୂଆ ଘୋଡ଼ଣୀ ଏବଂ ତା' ଉପରେ

କେତେ କ'ଣ ଖାଦ୍ୟ । ତା'ଛଡ଼ା ପାଖରେ ରହିଛି ନୂଆ ପୋଷାକ ।

ତା' ସ୍ୱପ୍ନର କୋଠରୀ !

ସେ ଉଠିପଡ଼ି ଦେଖିଗଲା ସବୁ କିଛି । ଚୌକି ଉପରେ ପଡ଼ିଛି ଖଣ୍ଡିଏ କାଗଜ । ଡହିଁରେ ଲେଖା ଅଛି—"ସିଡ଼ି ତଳେ ଥିବା ବାଳିକାକୁ ସେହି ଉପହାର ।"

ପିଙ୍କି ନିଦରୁ ଉଠି ଦେଖିଲା, ସୁନ୍ଦର ପୋଷାକ ପିନ୍ଧି ଝାନ୍‌ସୀ ଛିଡ଼ା ହୋଇଛି ତା' ବିଛଣା କଡ଼ରେ । ଆଶ୍ଚର୍ଯ୍ୟ ହୋଇଗଲା ସେ ।

ପରଦିନ ଝାନ୍‌ସୀ ନାମରେ ଗୋଟିଏ ପାର୍ଶଲ ଆସିଲା । ସେଥିରେ ଥିଲା ନାନା ପ୍ରକାରର ଗରମ ପୋଷାକ, କୋଟ ଏବଂ ଜୋତା ।

ମିସ୍ ଏମିଲିଆ ଘୋର ଚିନ୍ତାରେ ପଡ଼ିଲେ । ଝାନ୍‌ସୀର କେହି ଜଣେ ଧନୀ ସଂପର୍କୀୟ ତା'ର ଏ ଅବସ୍ଥା ଦେଖି ପକାଇଲେ କି ? କିଛି ସମୟ ଚିନ୍ତା କରି ସେ ଝାନ୍‌ସୀକୁ ଡାକିଲେ ଏବଂ ଅନ୍ୟ ଝିଅମାନଙ୍କ ସହ ପଢ଼ିବାକୁ ଅନୁମତି ଦେଲେ ।

"ଦେଖ, ଦେଖ, ପୁଣି ରାଜକୁମାରୀ ଝାନ୍‌ସୀ ଆସିଗଲେ । ସମ୍ଭବତଃ ତା' ପାଇଁ କିଏ ଯଥେଷ୍ଟ ସଂପଦ ରଖି ଯାଇଛନ୍ତି ।" —କହିଲା ଲୁନା ।

ତାକୁ ଈର୍ଷାରେ ଅନେଇଥାଏ ଡେଫୋଡ଼ିଲ ଓ ଖୁସିରେ ଝଲମଲ କରୁଥାଏ ଏଥେନାର ଆଖି । ଝାନ୍‌ସୀ

ହବୁଥାଏ—"ମୋ ସାହାଯ୍ୟକାରୀଙ୍କୁ ପାଖରେ ପାଆନ୍ତ କି, ଅନ୍ତତଃ ଧନ୍ୟବାଦଟିଏ ଦେଇ କୃତଜ୍ଞତା ପ୍ରକାଶ କରନ୍ତ ।"

ସେଦିନ ରାତିରେ ସେହି ମାଙ୍କଡ଼ଟି ଆସି ଝାନ୍‌ସୀ ଝରକା ପାଖରେ ଉଙ୍କି ମାରିଲା । ଥଣ୍ଡାରେ ଥରି ଯାଉଥାଏ । ଝାନ୍‌ସୀ ତାକୁ ଡାକିଲା—"ଆ-ଆ-ମୋ ପାଖକୁ ଚାଲିଆ । ଆଉ ଥଣ୍ଡାରେ ବସନା । ମୁଁ ସକାଳେ ତୋ ମାଲିକଙ୍କ ନିକଟରେ ପହଞ୍ଚାଇ ଦେବି ।" —ଏହା କହି ସେ ମାଙ୍କଡ଼ଟିକୁ ଘର ଭିତରକୁ ନେଇ ଆସିଲା ।

ପରଦିନ ସକାଳ । ଖୁବ୍ ଦୁଶ୍ଚିନ୍ତାରେ ବସିଥା'ନ୍ତି ଭାରତୀୟ ଭଦ୍ରଲୋକ ଜଣକ । କ୍ୟାପ୍‌ଟେନ୍ ରାଠୋରଙ୍କ ଝିଅର କୌଣସି ଖବର ମିଳୁନାହିଁ । ତାଙ୍କୁ ଖୁସିରେ ରଖିବା ପାଇଁ ଆସି ଥା'ନ୍ତି ସେହି ବଡ଼ ପରିବାରର ପିଲାପିଲିଙ୍କ ସହି ମା' ।

ଯେଉଁ ପିଲାଟି ଥରେ ଝାନ୍‌ସୀକୁ ପଇସା ଦେଇଥିଲା, କଥା ପଡ଼ିବାରୁ ସେ କହିଲା—"ଆଜ୍ଞା ମା, ତୁମେ ସେହି ଝିଅ କଥା କହୁନା, ମୁଁ ଯାହାକୁ ପଇସା ଦେଇଥିଲି ।"

ଏହି ସମୟରେ ତାଙ୍କ ଚାକର ଆସି କହିଲା—"ବାବୁ, ମୁଁ ଯେଉଁ ଝିଅ କଥା କହୁଥିଲି, ସେ ଏଠାକୁ ଆମ ମାଙ୍କଡ଼ ଧରି ଆସିଛି, ଡାକି ଦେବି ?"

ବାବୁଙ୍କ ସମ୍ମତି ପାଇ ସେ ଝାନ୍‌ସୀକୁ ଡାକି ଆଣିଲା । ଝାନ୍‌ସୀ ଘର ଭିତରକୁ ପଶି ଆସି ହିନ୍ଦୀରେ କହିଲା, "ଆପଣ ମୋତେ ଡାକୁଥିଲେ ?"

ଆଶ୍ଚର୍ଯ୍ୟ ହୋଇ ଭାରତୀୟ ଭଦ୍ରଲୋକ ଜଣକ କହିଲେ,—"ଝିଅ, ତୁମେ ହିନ୍ଦୀ ଜାଣିଲ କିପରି ?"

—"ମୁଁ ଭାରତୀୟ । ଏଠାକୁ ପଢ଼ିବା ପାଇଁ ଆସିଥିଲି । କିନ୍ତୁ ବାପା ମରିଗଲେ ଏବଂ ସେ ଗୋଟିଏ ହେଲେ ପଇସା ରଖିଯାଇ ନାହାନ୍ତି । ଏଣୁ ମୁଁ ବର୍ତ୍ତମାନ ଚାକରାଣୀ କାମ କରୁଛି ।"

—"ତୁମ ବାପା ଏପରି ଧନହୀନ ହେଲେ କିପରି ?"



( ଭାରତୀୟ ଭଦ୍ରଲୋକଙ୍କ ଘର ଝାନ୍ସୀ )

—"ସେ ତାଙ୍କ ବନ୍ଧୁଙ୍କ ଉପରେ ଭରସା କରି ଠକି ଯାଇଛନ୍ତି ।"

—"ତାଙ୍କ ନାମ କ'ଣ ?"

—"କ୍ୟାପ୍‌ଟେନ୍ ଶିବପ୍ରସାଦ ରାଠୋର ।"

—"ହେ ଭଗବାନ ! ଏତେ ଦିନ ପରେ ମୋତେ ଆଜି ମିଳାଇ ଦେଇଛ ମୋ ଖୋଜିଲା ମାଣିକ ।"

—"ଆପଣ କାହା କଥା କହୁଛନ୍ତି ?"—ପଚାରିଲା ଝାନ୍‌ସୀ ।

—"ମୁଁ ତୁମ ବାପାଙ୍କ ବନ୍ଧୁ । ତୁମକୁ ଦୁଇବର୍ଷ ହେଲା ଖୋଜୁଛି ଏବଂ ମୁଁ ଅଛି ଏ କାନ୍ଥର ଆର ପଟରେ । ମାତ୍ର ଗୋଟିଏ କାନ୍ଥର ବ୍ୟବଧାନରେ ।"

ଝାନ୍‌ସୀ ବାପାଙ୍କ ସଂପର୍କରେ ସବୁ କଥା ଜାଣିଲା ଏବଂ ଝରକା ଦେଇ ସବୁ ପୋଷାକ ଓ ଖାଦ୍ୟ ସାମଗ୍ରୀ ଯେ ବାବୁଙ୍କ ଚାକର ଦୁଇଜଣ ଦେଇ ଆସିଥିଲେ, ସେ କଥା ମଧ୍ୟ ଜାଣି ପାରିଲା । ଏବେ ବାପାଙ୍କ ବନ୍ଧୁ ପ୍ରତି ଆଉ ତା' ମନରେ କ୍ଷୋଭ ନାହିଁ ।

ଝାନ୍‌ସୀ ବାପାଙ୍କ ବନ୍ଧୁ ପାଖରେ ରହିବା କଥା ହେଲା । ଚାକରମାନେ ମଧ୍ୟ ଖୁବ୍ ଖୁସି । ଠିକ ସାଆନ୍ତାଣୀକୁ ପାଖରେ ପାଇବେ । ମାଙ୍କଡ଼ଟି କ'ଣ ବୁଝିଲା କେଜାଣି, ଖୁସିରେ ଡ଼ିଆଁ ମାରିବା ଆରମ୍ଭ କରିଦେଲା ।

କେବଳ ଜଣେ ଖୁବ୍ ଅସନ୍ତୁଷ୍ଟ ହେଲେ । ସେ ହେଲେ ମିସ୍ ଏମିଲିଆ । କେତେ ଜଣ ଅଭିଭାବକ ଝାନ୍‌ସୀ ପ୍ରତି ତାଙ୍କର ବ୍ୟବହାରର ଖବର ପାଇ ନିଜ ପିଲାଙ୍କୁ ସେଠାରୁ ନେଇ ଚାଲିଗଲେ । ଏପରି କି ତାଙ୍କ ଭଉଣୀ ମଧ୍ୟ ତାଙ୍କୁ ଭଲ ଆଖିରେ ଦେଖିଲା ନାହିଁ ।

ପିଙ୍କିକୁ ସାଙ୍ଗରେ ନେଇଗଲା ଝାନ୍‌ସୀ ।

ଭାରତୀୟ ଭଦ୍ରଲୋକ ଜଣକ ସମ୍ଭବତଃ ଦୁଶ୍ଚିନ୍ତା-ମୁକ୍ତ ହୋଇ ଅନେକ ପରିମାଣରେ ସୁସ୍ଥ ଅନୁଭବ କରୁଛନ୍ତି । ଝାନ୍‌ସୀ ତାଙ୍କୁ "ମଉସା" ଡାକୁଛି ଏବଂ ଖୁସିରେ ସେମାନଙ୍କ ଧ୍ୱନ କରୁଛି ।

ଏବେ ଝାନ୍‌ସୀ ମଉସା ସହ ପୂର୍ବର ସେହି କେକ୍ ଦୋକାନକୁ ଗଲା । ସେଠାରେ ସେ ଭିକାରୀ ଝିଅଟି ଭଲ ବେଶ-ପୋଷାକ ହୋଇ ଖାଦ୍ୟ ପରିବେଷଣ କରୁଥିବାର ଦେଖି ଖୁସି ହେଲା ।

ହଠାତ୍ ତା' ମୁହଁରେ ଚିନ୍ତାର ରେଖା ଫୁଟି ଉଠିବା ଦେଖି ମଉସା ପଚାରିଲେ—"ଝିଅ ତୋର କ'ଣ ହେଲା ?"

"ମୋର ମନେ ପଡ଼ିଗଲା ଅତୀତ କଥା । ଏଇ ଦୋକାନୀ ମୋତେ ପାଞ୍ଚଟି ପାଉଁରୁଟି ଦେଇଥିଲେ । ଭୋକିଲା ହୋଇ ଛିଡ଼ା ହୋଇଥିଲା ଏଇ ପରଷୁଥିବା ଝିଅ । ତାକୁ ମୁଁ ପାଉଁରୁଟି ଦେଇଥିଲି । ଏଇ ଦୋକାନ ମାଲିକଙ୍କ ଦୟାରେ ସେ ଟିକିଏ ଭଲରେ ଅଛି । ଆଚ୍ଛା ମଉସା, ଗୋଟିଏ କାମକଲେ ହୁଅନ୍ତାନି ?"

"କ'ଣ କହ ମା' ।"

"ମୋର ମନେହୁଏ ଏ ଦୋକାନୀ ଜାଣିପାରନ୍ତି କାହାର ପେଟ ଖାଲି ଅଛି । କେବଳ ବ୍ୟବସାୟ ନକରି ସେ କ୍ଷୁଧାର୍ତ୍ତଙ୍କୁ ଦୟା ମଧ୍ୟ କରିଥାନ୍ତି । ଏଣୁ ତାଙ୍କୁ କିଛି

ଟଙ୍କା ଦେଇ ଯିବା । ସେ ଷ୍ଟେଶନର୍ ଗରିବ ପିଲା କିଏ ଏଠାକୁ ଆସିଲେ ତାକୁ ଖାଇବାକୁ ଦେବେ ।"

ମଉସାଙ୍କ ଆଖି ଆନନ୍ଦରେ ଉଜଳି ଉଠିଲା, କୁନି ଝିଅ ହୃଦୟର ମହାନତା ଅନୁଭବ କରି । ସେ ତା'ର ଇଚ୍ଛା ପୂରଣ କଲେ ।

ତା' ପରେ ସେମାନେ ଘୋଡ଼ାଗାଡ଼ିରେ ବାସ ଭବନକୁ ଫେରି ଆସିଲେ । ଏସବୁ ଦେଖୁଥିଲା ଦୋକାନରେ ଥିବା ସେ ଝିଅଟି । ତା' ମୁହଁରୁ ମନକୁମନ ବାହାରି ପଡ଼ିଲା—'ସେ ଜଣେ କୁନି ରାଜକୁମାରୀ ।'



